# ବଣଭୋଜି

ଶ୍ରେଷ୍ଠ ଶିଶୁସାହିତ୍ୟ ଭାବେ ଭାରତ ସରକାରଙ୍କ ଦ୍ୱାରା
ଜାତୀୟ ପୁରସ୍କାରପ୍ରାପ୍ତ ପୁସ୍ତକ

ଡକ୍ଟର କୃତ୍ତିବାସ ନାୟକ

ଅରୁଣ ତରୁଣ
ଶିଶୁ ସାହିତ୍ୟ ବିକାଶ ସମିତି
କେନ୍ଦୁଝର

# ବଣଭୋଜି

ଜାତୀୟ ଶିଶୁସାହିତ୍ୟ ପୁରସ୍କାରପ୍ରାପ୍ତ ପିଲାଙ୍କ ଉପନ୍ୟାସ

*ରଚନା* : ଡକ୍ଟର କୃତ୍ତିବାସ ନାୟକ

*ପ୍ରକାଶକ* : ଅରୁଣ ତରୁଣ
ଶିଶୁ ସାହିତ୍ୟ ବିକାଶ ସମିତି
ଆକାଶବାଣୀ କଲୋନୀ, କେନ୍ଦୁଝର - ୧

*ପ୍ରଥମ ପ୍ରକାଶ* : ୧୯୯୬

*ମୁଦ୍ରଣ* : ସଂସାର ପ୍ରେସ, କଟକ-୯

**ମୂଲ୍ୟ : ଦଶ ଟଙ୍କା**

**BANA BHOZI** (PICNIC)
National Award Wining Children's Novel

*Writer* : Dr. Kruttibas Nayak

*Publisher* : Aruna Taruna
Sisu Sahitya Vikash Samiti
Akashvani Colony
Keonjhar-1

*First Edition* : 1996

*Printed at* : Sansar Press, Cuttack-9

**Price : Rs. 10.00**

# ବଣଭୋଜି

ସେଦିନ ରମେଶବାବୁ ଶ୍ରେଣୀରେ ପହଞ୍ଚିଲା ମାତ୍ରେ, ମନୋଜ ଠିଆହୋଇପଡ଼ି କହିଲା— "ସାର୍ ! ଆମେ ପଞ୍ଚମ ଶ୍ରେଣୀ ପିଲାଏ ଗୋଟାଏ ବଣଭୋଜି କରିବୁ ।"

ତା' କଥା ସରିଛି କି ନାହିଁ, ହମିଦ୍ କହିଲା, "ହଁ ସାର୍ ! ଆଉ ଅଳ୍ପଦିନ ପରେ ଆମେ ତ ମାଇନର ସ୍କୁଲକୁ ଚାଲିଯିବୁ । ତା' ପୂର୍ବରୁ ଆମେ ବଣଭୋଜିଟିଏ କରିକି ଯିବୁ ।"



ତା'ପରେ ଜଣକ ପରେ ଜଣେ ପିଲା କିଏ କେତେ କଥା କହିପକେଇଲେ, ସେସବୁ ଶୁଣିହେଲା ନାହିଁ ।

ପଞ୍ଚମ ଶ୍ରେଣୀର ସବୁଠାରୁ ମୋଟାପିଲା ଗୁରୁଦୟାଲ ଠିଆହୋଇ

ପଡ଼ିବାରୁ ଅନ୍ୟ ପିଲାମାନେ ତା'କଥା ଶୁଣିବାକୁ ନୀରବ ହେଇଗଲେ । ସେ କହିଲା, "ଏଥର ବଣଭୋଜି କରିବାକୁ ନନ୍ଦନକାନନ ଗଲେ ଭଲ ହେବ ।"

ଡେଭିଡ୍ ତା' କଥାକୁ କାଟି କହିଲା, "ଆରେ, ନନ୍ଦନକାନନରେ ବୁଲି, ପଶୁପକ୍ଷୀ ଦେଖୁ ଦେଖୁ ତ ସମୟ ଗ୍ଳିଯିବ । ଭୋଜିର କ'ଣ ମଜା ରହିବ ? ଯିବା ତ ପୁରୀର ସମୁଦ୍ରବେଳା କି କୋଣାର୍କ ଗଲେ ଭଲ ହେବ ।"

ପିଲାମାନଙ୍କ କଥା ଶୁଣି ରମେଶସାର୍ ବଣଭୋଜି କରିବାକୁ ରାଜି ହେଇଗଲେ । ଶେଷରେ କଥାଟା ପ୍ରଧାନ ଶିକ୍ଷକ ନିତ୍ୟାନନ୍ଦ ସାର୍‌ଙ୍କ କାନରେ ପଡ଼ିଲା । ସେ ରମେଶବାବୁ ଆଉ ସୁମିତ୍ରା ଦିଦିଙ୍କ ସହିତ କଥାବାର୍ତ୍ତା ହେଇ ପିଲାଙ୍କୁ କହିଲେ — "ତମେମାନେ ସବୁ ଛୋଟ ପିଲା । ବେଶୀ ଦୂରକୁ ଯାଇପାରିବ ନାହିଁ । ଆମ ସହର ଠାରୁ ଅଳ୍ପ ଦୂରରେ ମୁଁ ଗୋଟାଏ ଭଲ ଜାଗା ଦେଖିଛି, ସେଇଠି ଝରଣାଟିଏ କୁଳୁକୁଳୁ ହେଇ ବୋହିଯାଉଛି । ବିଭିନ୍ନ ପ୍ରକାର ପକ୍ଷୀ ମଜାରେ ଉଡ଼ିବୁଲୁଛନ୍ତି । ବଢ଼ିଆ ଶାନ୍ତ ପରିବେଶ । ସେଇଠି ବଣଭୋଜି କଲେ, ତମେମାନେ ଅଧିକ ଆନନ୍ଦ ପାଇପାରିବ । ଆମେ ସାଙ୍ଗରେ ସୁମିତ୍ରା ଦିଦିଙ୍କୁ ମଧ୍ୟ ନେଇଯିବା ।"

ପ୍ରଧାନ ଶିକ୍ଷକଙ୍କ କଥା ଶୁଣି ପିଲାମାନେ ଆନନ୍ଦରେ ନାଚିଉଠିଲେ । ବଣଭୋଜିର ଆଗଦିନ ରମେଶ ସାର୍‌ଙ୍କ ସାଙ୍ଗରେ ମିଶି ପିଲାମାନେ ଭୋଜି ଜିନିଷ କିଣିଲେ । ନିଜଘରୁ କିଏ ବାଲଟି, ଡେକ୍‌ଚି, କଡ଼େଇ ଆଣିଲା ତ ପୁଣି କିଏ ପନିକି, ଡାଳ, ଗିନା, ସପ ଆଣି ଠୁଳ କଲେ । ଗ୍ଳହୁଁ ଗ୍ଳହୁଁ ସବୁଜିନିଷ ଯୋଗାଡ଼ ହେଇଗଲା ।

ବଡ଼ିଭୋରରୁ ବସ୍ ଧରି ବଣଭୋଜି ଜାଗାକୁ ଯିବାକୁ ପଡ଼ିବ । ସେଇଥିପାଇଁ ପିଲାଙ୍କ ଆଖିରେ ନିଦ ନାହିଁ । ଏତେଦିନ ପରେ ତାଙ୍କୁ ଗୋଟାଏ ସୁଯୋଗ ମିଳିଛି । ନିଜେ ଚୁଲି ତିଆରି କରିବେ । ପରିବା କାଟିବେ । ମସଲା ବାଟିବେ, ପୁଣି ଭାତ, ତରକାରି ରାନ୍ଧି ପରିଷିବେ । ତାଙ୍କ ପାଇଁ ଯ୍ୟା'ଠାରୁ ଆଉ ଆନନ୍ଦ କ'ଣ ଅଛି ?

ଆଗରୁ ସେମାନେ ସୁମିତ୍ରା ଦିଦିଙ୍କୁ କହିଛନ୍ତି — ''ସେ ତରକାରିରେ ଟିକେ ଲୁଣ ପକେଇଦେବେ । ନ ହେଲେ, ସବୁ ଗଡ଼ବଡ଼ ହେଇଯିବ ।''



ବସ୍ ଆସିବା ଆଗରୁ ସବୁପିଲା ଆସି ଏକ୍‌ଜୁଟ୍ ହେଇଥିଲେ । ହମିଦ୍, ଡେଭିଡ୍ ଗ୍ରଉଳ ପନିପରିବା ମୁଣାକୁ କାନ୍ଧରେ ଝୁଲେଇ ବସ୍‌ରେ ଚଢ଼ିଲେ । ଗୁରୁଦୟାଲ ଡେକ୍‌ଚି, କଡ଼େଇ ବାଲ୍‌ତି ଧରିଥାଏ । ଜୁଲି ତେଲ ଡବା ଆଉ ମିନି ମସଲା ପୁଡ଼ିଆକୁ ଧରି ବସ୍‌ରେ ବସିଲେ । ମନୋଜ ଅନ୍ୟ ପିଲାମାନଙ୍କୁ ଶାନ୍ତହେଇ ବସିବାକୁ କହୁଥାଏ; କିନ୍ତୁ, ପିଲାମାନେ ତା' କଥାକୁ ନ ଶୁଣି ହୋହଲ୍ଲା କରୁଥାଆନ୍ତି । ଜୁଲି ତାକୁ ସଫା ସଫା କହିଦେଲା — ''ଏଇଟା ସ୍କୁଲ ନୁହେଁ ଯେ, ମନିଟରଙ୍କ କଥାମାନି ଚଳିବୁ । ଆଜି ତୁ ଆମ କାନକୁ ଧରି ଠିଆକରାଇ ପାରିବୁ ନାହିଁ ।''

ଶେଷରେ ମନୋଜ ମୁଣ୍ଡରେ ଗୋଟାଏ ବୁଦ୍ଧି ଜୁଟିଗଲା । ସେ ହମିଦ୍ ଆଉ ଡେଭିଡ୍ ବସିଥିବା ସିଟ୍ ପାଖରେ ବସିପଡ଼ି ତାଙ୍କ କାନରେ କ'ଣ

କହିଦେଲା । ଦିଦି ଶିଖାଇ ଦେଇଥିବା ସଂହତି ଗୀତଟିକୁ ସେମାନେ ଏକ ସଙ୍ଗରେ ଗାଇଉଠିଲେ, ....

ସକଳ ଧରମ ମିଳନ ପୀଠ ଏ'
ଭାରତ ଆମରି ମାଆ,
ସେଇ ମାଆ ସବୁ ଗୁଣେ ମନୋହର—
ଦିଶେ ସବୁଦିନ ନୂଆ । (ଘୋଷା)

ମନ୍ଦିରେ ଶୁଭେ ଘଣ୍ଟା, ଶଙ୍ଖ ନାଦ—
ହରେକୃଷ୍ଣ ହରେ ରାମ,
ମୂରତି ବସାଇ ଧୂପଦୀପ ଦେଇ
ହିନ୍ଦୁ ପୂଜେ ଭଗବାନ ।
ଗୀତା ପୁରାଣରେ ଈଶ୍ୱର ଖୋଜେ ସେ—
ଆଶ୍ରା କରି ଚଉବାହା,
ସକଳ ଧରମ ମିଳନ ପୀଠ ଏ'—
ଭାରତ ଆମରି ମାଆ (ପ୍ରଥମ ପଦ)

ଗୀର୍ଜାରେ ଶୁଭେ ଯୀଶୁ ପ୍ରଭୁ ହେ—
ତାରଣ-କରତା ତୁମେ,
ହଜାଇଦିଅ ହେ ମଜାଇଦିଅ ହେ—
ତୁମରି ଅମୃତ ପ୍ରେମେ ।
ବାଇବେଲ୍ ବାଣୀ ଅମୃତ କାହାଣୀ—
ଚଲାପଥେ ହୁଏ ସାହା,
ସକଳ ଧରମ ମିଳନ ପୀଠ ଏ'—
ଭାରତ ଆମରି ମାଆ । (ଦ୍ୱିତୀୟ ପଦ)

ମସଜିଦ୍‌ଠାରୁ ଭାସିଆସେ ସ୍ୱର—
ଆଲ୍ଲା ହୋ-ଆକବର,
କୋରାନ୍‌ର ବାଣୀ ଉଚ୍ଚ ସ୍ୱରେ ଗାଏ—
ମୁସଲିମ୍ ଭାଇ ମୋର ।
ସବୁ ଧରମର ମହିମା ଅପାର—
ଦେଖାଏ ସତ୍ୟର ରାହା ।
ସକଳ ଧରମ ମିଳନ ପୀଠ ଏ'—
ଭାରତ ଆମରି ମାଆ । (ତୃତୀୟ ପଦ)



ପ୍ରଧାନ ଶିକ୍ଷକ, ସୁମିତ୍ରା ଦିଦି ଆଉ ରମେଶବାବୁ ପଛରେ ବସି ପିଲାଙ୍କ ମଜା ଦେଖୁଥା'ନ୍ତି । ଗ୍ବହୁଁ ଗ୍ବହୁଁ ହୋହଲ୍ଲା କରୁଥିବା ପିଲାମାନେ ତାଳିମାରି ସେଇ ଗୀତର ପାଳିଧରି ଗାଇଲେ ।

ଗୀତ ଶେଷହେଲା ବେଳକୁ ବସ୍ ବହୁତ ଦୂରକୁ ଗ୍ବଲିଯାଇଥାଏ । ଛକ ଜାଗାରେ ବସ୍ ଅଟକିଲା । ସବୁପିଲା ଖପ୍‌ଖାପ୍ ହେଇ ବସ୍‌ରୁ ଡେଇଁ ଓହ୍ଲାଇ ପଡ଼ିଲେ ।

ପ୍ରଧାନ ଶିକ୍ଷକ ହାତ ବଢ଼େଇ ଅଳ୍ପ ଦୂରରେ ଥିବା ଖଣ୍ଡିଆ ପାହାଡ଼କୁ ଦେଖେଇ କହିଲେ, ''ଏଇଠୁ ଆମକୁ ଚାଲି ଚାଲି ସେଇ ପାହାଡ଼ ପାଖକୁ ଯିବାକୁ ପଡ଼ିବ ।''

ଚାହୁଁ ଚାହୁଁ ପିଲାମାନେ ଦୌଡ଼ାଦୌଡ଼ି ହେଇ ଆଗକୁ ମାଡ଼ି ଚାଲିଲେ । ଯେଉଁମାନେ କିଛି ଜିନିଷ ଧରି ନଥିଲେ, ସେମାନେ ଜଙ୍ଗଲ ରାସ୍ତାରୁ ଶୁଖିଲା କାଠ ସଂଗ୍ରହ କରି ଚାଲିଲେ ।



ପ୍ରଧାନ ଶିକ୍ଷକ ଲକ୍ଷ୍ୟ କଲେ, ପୁଅ ପିଲାମାନେ ବହୁତ ଆଗକୁ ଚାଲିଗଲେଣି; କିନ୍ତୁ ଝିଅ ପିଲାଙ୍କ ସାଙ୍ଗରେ ମିଶି ଦିଦି ପଛରେ ଧୀରେ·ଧୀରେ ଆସୁଛନ୍ତି । ସେମାନେ ଅଳ୍ପବାଟ ଚାଲି ଥକିପଡ଼ି ସାରିଲେଣି । ତେଣୁ ସେ ରମେଶ ସାର୍‌ଙ୍କୁ ଅଟକେଇ ଠିଆହେଇ ପଡ଼ିଲେ । ସୁମିତ୍ରା ଦିଦି ପାଖକୁ ଆସିଯିବାରୁ କହିଲେ, ''ଆପଣ ଥକି ପଡ଼ିଲେଣି ବୋଧହୁଏ । ଗପସପ ହେଇ ଚାଲିଲେ, ପଥଶ୍ରମ ଜଣାପଡ଼ିବ ନାହିଁ ।''

ସୁମିତ୍ରା ଦିଦି ଆଉ ଝିଅପିଲାମାନେ ଠିକ୍ ସେଇଆ ଚାହୁଁଥିଲେ । ସେ ଜାଣନ୍ତି, ରମେଶ ସାର୍ ଶ୍ରେଣୀରେ ପିଲାଙ୍କୁ ଗପ କହିଲା ବେଳେ; ସେମାନେ ଏକ ଲୟରେ ଶୁଣନ୍ତି । ତାଙ୍କ ଗପଗୁଡ଼ିକ ଭାରି ମଜା ଲାଗେ ବୋଲି ପିଲାମାନେ

କହନ୍ତି । ସେଇଥିପାଇଁ ତାଙ୍କୁ ସବୁ ପିଲା ଆଦର କରନ୍ତି । ତେଣୁ ସେ ରମେଶ ସାର୍‌ଙ୍କୁ କହିଲେ, "ଆପଣ ଗୋଟିଏ ଭଲ ଗପ କହନ୍ତୁ ନା... ! ଆମେ ସବୁ ଗପ ମଝିରେ ହୁଁ-ହାଁ ମାରୁଥିବୁ । ଭାରି ମଜା ହେବ ।"

ରମେଶ ସାର୍ ଗପ କହିବେ — ଏ'କଥାଟା, ଜାଣିଲା ପରେ ଯିଏ ଯେଉଁଠି ଥିଲେ, ପିଲାମାନେ ଦୌଡ଼ାଦୌଡ଼ି ହେଇ ତାଙ୍କ ଚାରିପଟେ ଘେରି ପଡ଼ିଲେ ।

ମନୋଜକୁ ପୁରାଣର ଗପଗୁଡ଼ିକ ଭଲ ଲାଗେ । ବୀର କର୍ଣ୍ଣ, ଦୁର୍ଯ୍ୟୋଧନ, ଅର୍ଜୁନ ଆଉ ମହାବଳୀ ଭୀମସେନଙ୍କ କାହାଣୀ ସେ ଆଗରୁ ଘରେ ମାଆଙ୍କ ଠାରୁ କିଛି କିଛି ଶୁଣିଥିଲା । ସେହିଭଳି ଗୋଟାଏ ଭଲ ପୁରାଣ କାହାଣୀ ଶୁଣେଇବାକୁ ରମେଶ ସାର୍‌ଙ୍କୁ ଅନୁରୋଧ କଲା ।



ସୁମିତ୍ରା ଦିଦି ତା'କଥାକୁ ସମର୍ଥନ କରି କହିଲେ, "ହଁ, ଆମ ଦେଶର ପୁରାଣଗୁଡ଼ିକରେ ବଢ଼ିଆ ବଢ଼ିଆ ମଜା ଗପ ସବୁ ଅଛି । ରାମାୟଣ, ମହାଭାରତ ତ ଗପର ଭଣ୍ଡାର । ସେଇଥିରୁ ଗୋଟାଏ ଗପ କୁହନ୍ତୁ ।"

ଗୁରୁଦୟାଲର ବାପା ଥରେ ତାକୁ କହିଥିଲେ — "ବହୁତ ଦିନ ଆଗରୁ ସେମାନେ ପଞ୍ଜାବରେ ରହୁଥିଲେ । ତାଙ୍କର ଜେଜେବାପା ଦେଶ ପାଇଁ ଲଢ଼େଇ

କରି ପ୍ରାଣବଳି ଦେଇଥିଲେ । ଇଂରେଜମାନଙ୍କ ଶାସନ କାଳରେ ତାଙ୍କରି ଭଳି ଅନେକ ବୀରପୁରୁଷ ଜୀବନକୁ ବାଜିଲଗେଇ ଲଢ଼ିଥିଲେ । ସେମାନେ ହେଉଛନ୍ତି, ଆମମାନଙ୍କ ପାଇଁ ଜଣେ ଜଣେ ମହାପୁରୁଷ ।'' ଏ କଥା ମନେ ପଡ଼ିଯିବାରୁ ସେ କହିଲା — ''ସାର୍ ! ଆମ ଇତିହାସରୁ ବୀରପୁରୁଷଙ୍କ ଲଢ଼େଇ କାହାଣୀଟିଏ କହନ୍ତୁ ନା ।''



ରମେଶ ସାର୍ ଗୁରୁଦୟାଳର କଥାକୁ ପସନ୍ଦ କରି କହିଲେ, ''ସତରେ ଯେଉଁମାନେ ମାନବ ଜାତି ପାଇଁ, ମାତୃଭୂମି ପାଇଁ ପ୍ରାଣବଳି ଦେଇଛନ୍ତି, ସେମାନେ ସମସ୍ତଙ୍କର ପୂଜ୍ୟ । ତାଙ୍କର ଜୀବନରେ ଘଟିଯାଇଥିବା ବିଶେଷ ଘଟଣାଗୁଡ଼ିକୁ ପଢ଼ିଲେ, ଶୁଣିଲେ ଆମମାନଙ୍କ ହୃଦୟରେ ଦେଶପ୍ରେମ, ଜାତିପ୍ରେମ ଜାଗ୍ରତ ହୁଏ ।''

ଏତିକିବେଳେ ଦିଦି ଦେଖିଲେ, ଜୁଲି କାନରେ ମିନି ଫୁସ୍ ଫୁସ୍ ହେଇ କ'ଣ କହୁଛି । ସେ ଜୁଲିକୁ ପଚାରିଦେଲେ, ''ମିନି କି' ଗପ ଶୁଣିବାକୁ କହୁଛି କିରେ ?''

ଜୁଲି କହିଲା — ''ସାର୍ ! ମିନି କହୁଛି, ଭୂତ ଗପଟିଏ ଶୁଣିବ ।''

ପ୍ରଧାନ ଶିକ୍ଷକ ଚୁପ୍‌ଚାପ୍ ଶୁଣୁଥିଲେ । ସେ ଜୁଲିର କଥା ଶୁଣି କହିଲେ, ''ଭୂତପ୍ରେତ କି ଡାହାଣୀ ବୋଲି କିଛି ନାହିଁ । ଖାଲି କଳ୍ପନା କରି ବୁଢ଼ାବୁଢ଼ୀ-

ମାନେ ଏଣୁତେଣୁ ଗପ ଭୂତପ୍ରେତଙ୍କ ନାଁ'ରେ କହିଥା'ନ୍ତି । ସେ ଗପଗୁଡ଼ାକ ପିଲାଙ୍କୁ ଡରୁଆ କରିପକାଏ । ରାତିରେ ସେମାନେ ଭୟଙ୍କର ସ୍ୱପ୍ନ ଦେଖି ଡରନ୍ତି । ସେଭଳି ବାଜେ ଗପ ପିଲାଙ୍କୁ କୁହାଯିବ ନାହିଁ।''

ଏଥର ଡେଭିଡ୍ ରମେଶବାବୁଙ୍କ ପାଖକୁ ଲାଗିଯାଇ କହିଲା, ''ସାର୍, ଆପଣ ତ ଆମକୁ ଆଗରୁ କେତେ ମହାପୁରୁଷଙ୍କ କାହାଣୀ ଆଉ ପୁରାଣ ଗପ କହିସାରିଛନ୍ତି । ଆଜି ବାଇବେଲରୁ ଗପଟିଏ କୁହନ୍ତୁ । ମହାତ୍ମା ଯୀଶୁଙ୍କୁ କିଭଳି କାଠ ପଟାରେ କଣ୍ଟାପିଟି ମାରିଦିଆଗଲା ? ସେ ଗପଟାରୁ ଅନେକ ଶିକ୍ଷା ମିଳିବ । ଆମ ଘରକୁ ଜଣେ ମଉସା ଆସିଥିଲେ । ସେ ମୋତେ ସେଇ ଗପଟା କହିଥିଲେ ।''

ଡେଭିଡ୍‌ର ପାଖେ ପାଖେ ହମିଦ୍ ଗ୍ଭଲୁଥିଲା । ସେ କହିଲା, ''ଖାଲି ତୋ' ମଉସା କ'ଣ ଗପ କହନ୍ତି ? ମୋର ଅଜା ବି ଭଲ ଗପ କହିପାରନ୍ତି । ସିଏ ତ ମସ୍‌ଜିଦ୍ ପାଖରେ ରହନ୍ତି, ତେଣୁ ସେ କୋରାନ୍‌ର ବହୁତ ଗପ ଜାଣିଛନ୍ତି । ଗତକାଲି ମତେ କହୁଥିଲେ, 'ମହାପୁରୁଷ ମହମ୍ମଦଙ୍କୁ ଗୋଟାଏ ଛୋଟ ବୁଢ଼ୀଆଣୀ କେମିତି ବଞ୍ଚେଇଦେଇ ପାରିଲା ।' ବହୁତ ବଢ଼ିଆ ଗପ ସାର୍ ! ସେଇ ଗପଟା କୁହନ୍ତୁ ।''



ସବୁପିଲାଙ୍କ କଥା ଶୁଣି ରମେଶବାବୁ କି' ଗପ କହିବେ, ସ୍ଥିର କରିପାରିଲେ ନାହିଁ। ସେ ମୁରୁକି ହସି ପ୍ରଧାନ ଶିକ୍ଷକଙ୍କ ମୁହଁକୁ ଚାହିଁଲେ ।

ପ୍ରଧାନଶିକ୍ଷକ ହସିପକେଇ କହିଲେ, ''ଆମର ପିଲାମାନେ ନିଜ ନିଜ ରୁଚିର ଗପ ଶୁଣିବା ପାଇଁ ଅନୁରୋଧ କରୁଛନ୍ତି । ମୁଁ ଦେଖୁଛି, ପିଲାମାନେ ବହୁତ ଚାଲାଖ ହେଇଗଲେଣି । ବିଭିନ୍ନ ଧର୍ମପୁସ୍ତକର ଗପ, ମହାପୁରୁଷଙ୍କ ଜୀବନ କାହାଣୀ ଆଉ କେତେ ନୂଆ ନୂଆ କଥା ଜାଣିବାକୁ ସେମାନେ ଆଗ୍ରହ ପ୍ରକାଶ କରୁଛନ୍ତି । ସତରେ ଏକଥା ଜାଣି ମୋତେ ଭାରି ଖୁସି ଲାଗୁଛି ।''

ତା'ପରେ ସେ ଡେଭିଡ୍ ଆଉ ହମିଦ୍‌ଙ୍କ ପାଖକୁ ଚାଲିଯାଇ ତାଙ୍କ କାନ୍ଧରେ ହାତ ପକେଇ କହିଲେ — ''ମୁଁ ଗୋଟାଏ ପ୍ରଶ୍ନ ପଚାରିବି । ତମମାନଙ୍କ ଭିତରୁ କିଏ କହିପାରିବ ହାତ ଟେକିଲ ।''

ସଙ୍ଗେ ସଙ୍ଗେ ମନୋଜ ହାତ ଟେକିପକାଇଲା । ତାକୁ ଦେଖି ସବୁ ପିଲା ହାତ ଟେକିଲେ ।

''ମହାତ୍ମା, ଯୀଶୁ, ମହାପୁରୁଷ ମହମ୍ମଦଙ୍କ ଭଳି ତମେ ଆଉ କେଉଁ କେଉଁ ଧର୍ମଗୁରୁ, ମହାପୁରୁଷଙ୍କ ନାଁ' ଶୁଣିଛ କହିଲ ?'' ପ୍ରଶ୍ନଟି ପ୍ରଧାନଶିକ୍ଷକ ପଚାରିଦେଲେ ।



ମନୋଜ ଉତ୍ତରରେ କହିଲା — "ସାର୍ ! ମୁଁ ମହାବୀର ଜୈନ, ଗୌତମ ବୁଦ୍ଧ, ଆଉ ଶଙ୍କରାଚାର୍ଯ୍ୟଙ୍କ ନାଁ' ଶୁଣିଛି ।"

ଗୁରୁଦୟାଲ ତରବରର ହୋଇ କହିପକାଇଲା —"ଆଉ ଗୁରୁ ନାନକ ?"

ସୁମିତ୍ରା ଦିଦି ପିଲାମାନଙ୍କ ଉତ୍ତର ଶୁଣି କହିଲେ — "ହଁ, ସାର୍ ! ଆପଣ ଯାହା କହୁଥିଲେ, ତାହା ଠିକ୍ । ଆମର ପିଲାମାନେ ଅନେକ କଥା ଜାଣିଗଲେଣି ।"

ତାଙ୍କ ପାଟିରୁ କଥା ଛଡ଼େଇ ନେଇ ପ୍ରଧାନଶିକ୍ଷକ କହିଲେ — "ଯେଉଁ ମହାପୁରୁଷମାନେ ଆମମାନଙ୍କୁ ସତ୍ୟ ପଥରେ ଚାଲିବାକୁ, ଶାନ୍ତିରେ ଚଳିବାକୁ ଆଉ ସୁଖରେ ବଞ୍ଚିବାକୁ ଉପାୟ ବତେଇ ଦେଇଛନ୍ତି, ସେମାନେ ହେଉଛନ୍ତି, ଆମ ମଣିଷ ଜାତି ପାଇଁ ଈଶ୍ୱର । ତାଙ୍କୁ କିଏ ମହାପୁରୁଷ ତ କିଏ ପ୍ରଭୁ କହନ୍ତି । ଆଉ କେହି କେହି ଧର୍ମଗୁରୁ ମଧ୍ୟ କହନ୍ତି । ସେମାନେ ନିଜ ପାଇଁ କିଛି ନକରି ସମଗ୍ର ମାନବ ଜାତିର କଲ୍ୟାଣ କାମରେ ଲାଗିଥା'ନ୍ତି । ତେଣୁ ସେମାନେ ଆମ ସମସ୍ତଙ୍କ ପାଇଁ ଦେବତା ହୋଇ ରହିଯାଇଛନ୍ତି । ସେମାନଙ୍କର ଆଦର୍ଶ ଜୀବନ କାହାଣୀ ପଢ଼ିବା, ଶୁଣିବା ଆଉ ତାଙ୍କ ପ୍ରଦର୍ଶିତ ଆଦର୍ଶରେ ଚଲିବା ଖୁବ୍ ଭଲ କଥା ।"

ରମେଶ ସାର୍ ଦେଖିଲେ, ପିଲାମାନେ ଗପ ଶୁଣିବା ଲୋଭରେ ଆଉ ଆଗଭଳି ଡଗ ଡଗ ହୋଇ ଆଗକୁ ମାଡ଼ିଯାଉ ନାହାନ୍ତି । ମହୁଫେଣାକୁ ମହୁମାଛିମାନେ ଘେରି ରହିଲାପରି ପିଲାମାନେ ତାଙ୍କୁ ଘେରି ରହିଛନ୍ତି । ସେ ପିଲାମାନଙ୍କୁ ଟିକେ ଉଚ୍ଚ ସ୍ୱରରେ କହିଲେ, "ଶୀଘ୍ର ଶୀଘ୍ର ଚାଲ । ତେଣେ ଟାଣ ଖରା ହୋଇଯିବ । ବଣଭୋଜି ଜାଗାରେ ବସି ତମେମାନେ ଗପ ଶୁଣିବ ।"

ପ୍ରଧାନଶିକ୍ଷକ କହିଲେ, "ମୁଁ ଯେଉଁ ବଣଭୋଜି ଜାଗା କହୁଥିଲି, ଆମେ ତ ଆସି ସେଇଠି ପହଞ୍ଚି ସାରିଲେଣି । ଦେଖ ବାଆଁପଟରେ ଛୋଟିଆ ଝରଣାଟି କୁଳୁକୁଳୁ ହୋଇ ବହିଯାଉଛି । ଡାହାଣ ପଟରେ ଶାଳବଣ । ଆଗରେ

ଯେଉଁ ବଡ଼ ଝଙ୍କାଳିଆ ବରଗଛ ଦିଶୁଛି, ତାରି ମୂଳେ ସବୁ ଜିନିଷପତ୍ର ରଖ । ରୋଷେଇ କାମ ଆରମ୍ଭ ହେଇଗଲେ, ମଜାରେ ଗପ ଶୁଣିବ ଆଉ ଶୁଣେଇବ ।''

ପ୍ରଧାନଶିକ୍ଷକ ନିତ୍ୟାନନ୍ଦ ସାର୍‌ଙ୍କ ପାଟିରୁ କଥା ନ ସରୁଣୁ, ପିଲାମାନେ ଦୌଡ଼ାଦୌଡ଼ି ହେଇ ବରଗଛ ମୂଳେ ପହଞ୍ଚିଗଲେ । ସାଙ୍ଗରେ ନେଇଥିବା ସପ ବିଛେଇ ଦେଲେ । ଦିଦି ଓ ସାର୍ ସେଥିରେ ବସିଲେ । ହମିଦ୍ ଚୁଲି ତିଆରି କଲା । ଜୁଲି ଆଉ ମିନି ପରିବାପତ୍ର କାଟି ବସିଲେ ।

ଗୁରୁଦୟାଲ ସୁମିତ୍ରା ଦିଦିଙ୍କ ପାଖକୁ ଯାଇ କହିଲା — ''ଦିଦି ! ଆଜି ମୁଁ ରୋଷେଇ କାମ କରିବି ।'' ଡେଭିଡ୍ ଅନ୍ୟ ପିଲାଙ୍କୁ ନେଇ ମଟର, ପିଆଜ ଆଉ ରସୁଣରୁ ଚୋପା ଛଡ଼େଇ ବସିଲା । ମନୋଜ ବାଲ୍‌ତି ନେଇ ପାଣି ବୋହିଆଣିଲା ।

ସୁମିତ୍ରା ଦିଦି ଉଠିଯାଇ ଚୁଲିଟା ଲଗେଇଦେଲେ । ତା'ପରେ ରୋଷେଇ କାମ ଆରମ୍ଭ ହେଇଗଲା । ରମେଶ ସାର୍ ଆଉ ପ୍ରଧାନଶିକ୍ଷକ ସପରେ ବସି ପିଲାମାନଙ୍କ କାମ ଦେଖୁଥା'ନ୍ତି । ସୁମିତ୍ରା ଦିଦି ଆସି ତାଙ୍କ ପାଖରେ ବସିପଡ଼ି କହିଲେ, ''ସାର୍ ! ଦେଖନ୍ତୁ, ପିଲାମାନେ ଆମକୁ ମଝିରେ ବସାଇ ଦେଇ କେମିତି ଚାରିପଟେ ଘେରି ବସିଛନ୍ତି ।''

ରମେଶ ସାର୍ କହିଲେ, ''ଏମିତି ବସିବାର କାରଣ କ'ଣ ଜାଣନ୍ତି ? ସମସ୍ତେ ଯେମିତି ଗପ ଶୁଣିପାରିବେ ।''

ସାର୍‌ଙ୍କ କଥା ଶୁଣି ସବୁପିଲା ଏକ ସଙ୍ଗେ ହସିଉଠିଲେ ।

ରମେଶବାବୁଙ୍କୁ ଚାହିଁ ପ୍ରଧାନଶିକ୍ଷକ କହିଲେ, 'ବାଟରେ ଆମେ ଯେଉଁ ଆଲୋଚନା ଅଧା କରିଥିଲେ, ସେଇଟା ଆଗ ଶେଷ ହେଇଗଲେ ଭଲ ହେବ ।'

ପ୍ରଧାନଶିକ୍ଷକଙ୍କ ଉପଦେଶ ଶୁଣି ସମସ୍ତେ ରାଜି ହେଇଗଲେ । ସୁମିତ୍ରା ଦିଦି ପିଲାମାନଙ୍କୁ ଚାହିଁ ହଠାତ୍ ପଚାରି ଦେଲେ, 'କହିଲେ, ପିଲାଏ — 'ଧର୍ମ କହିଲେ, ତମେମାନେ କ'ଣ ବୁଝୁଛ ?'

ପାଣି ବାଲ୍‌ତିଟାକୁ ତଳେ ଥୋଇଦେଇ ମନୋଜ କହିପକାଇଲା — 'ଦିଦି, ମୁଁ କହିବି । ହିନ୍ଦୁଧର୍ମ, ମୁସଲମାନ ଧର୍ମ ଆଉ ଖ୍ରୀଷ୍ଟିୟାନ ଧର୍ମ ।

ରମେଶ ସାର୍ ମନୋଜର ଭୁଲ୍ ସଂଶୋଧନ କରି ବୁଝେଇଦେଲେ, ଯେଉଁମାନେ ଇସ୍‌ଲାମ ଧର୍ମ ଗ୍ରହଣ କରିଥାଆନ୍ତି, ସେମାନଙ୍କୁ ମୁସଲମାନ କହନ୍ତି । ସେଇମିତି ଖ୍ରୀଷ୍ଟଧର୍ମାବଲମ୍ବୀମାନଙ୍କୁ ଖ୍ରୀଷ୍ଟିୟାନ କୁହାଯାଏ ।'

ଗୁରୁଦୟାଲ ଚୁଲି ଉପରେ ବଡ଼ ଡେକ୍‌ଚିଟାକୁ ଥୋଇଦେଇ କହିଲା, 'ସାର୍ ! ମନୋଜ ଆହୁରି ଅନେକଗୁଡ଼ିଏ ଧର୍ମର ନାଁ ଛାଡ଼ିଦେଇଛି । ସେଗୁଡ଼ିକ ହେଲା — ବୌଦ୍ଧଧର୍ମ, ଜୈନଧର୍ମ, ଶିଖ୍‌ଧର୍ମ ଏବଂ ଜୋରାଷ୍ଟର ଧର୍ମ ।'

ହମିଦ୍ ଏତେବେଳଯାଏ କ'ଣ ଭାବୁଥିଲା । ସେ ଠିଆହେଇ ପଡ଼ି କହିଲା — 'ଦିଦି ଆମ ଘର ପାଖରେ ଜଣେ ମଉସା ରହନ୍ତି । ସେ ନାଲିଆ ରଙ୍ଗର ଲୁଗା ପିନ୍ଧନ୍ତି । ଖଣ୍ଡେ ଗାମୁଛା ଦେହରେ ପକାନ୍ତି । ତାଳ ବରଡ଼ାରେ ତିଆରି ଛତା ବ୍ୟବହାର କରନ୍ତି । ଭୀମ ଭୋଇଙ୍କ ଭଜନ ଗାଆନ୍ତି । ଥରେ କହୁଥିଲେ, ସେ ଅଲେଖ ଧର୍ମ ନେଇଛନ୍ତି ।



ହମିଦ୍‌ର କଥା ଶୁଣି ପ୍ରଧାନଶିକ୍ଷକ ବୁଝେଇଦେଲେ — 'କେବଳ ଅଲେଖ ଧର୍ମ ନୁହେଁ । ହିନ୍ଦୁ ଧର୍ମରେ ଜ୍ଞାନ ଧର୍ମ, ପ୍ରେମ ଧର୍ମ ଓ ବୈଷ୍ଣବ ଧର୍ମ

ପରି ଅନେକ ଉପଧର୍ମ ରହିଛି । ସେସବୁ ହେଲା, ହିନ୍ଦୁ ଧର୍ମର ଜଣେ ଜଣେ ମହାପୁରୁଷଙ୍କର ଭିନ୍ନ ଭିନ୍ନ ମତ ବା ପନ୍ଥା । ମତ ଭିନ୍ନ ଭିନ୍ନ ହେଲେ ବି ସମସ୍ତଙ୍କର ମୂଳଲକ୍ଷ୍ୟଟି ଏକ । ବିଭିନ୍ନ ନାମରେ,ବିଭିନ୍ନ ସମ୍ପ୍ରଦାୟର ଲୋକେ ନିଜ ନିଜର ରୁଚି ଅନୁସାରେ ଗୁରୁ, ଦେବତା ବା ପ୍ରକୃତିକୁ ପୂଜା କରନ୍ତି । ସମସ୍ତଙ୍କର ମୂଳ ଉଦ୍ଦେଶ୍ୟ ସମାନ ହେଇଥିବାରୁ ସବୁ ଧର୍ମ ସମାନ ବୋଲି ମହାପୁରୁଷମାନେ କହନ୍ତି । ଅନେକ ଧର୍ମର ଅନେକ ମତବାଦର ଲୋକ ଆମ ଦେଶରେ ରହୁଥିଲେ ବି ସେମାନେ କେବଳ ଭାରତୀୟ ଭାବରେ ପରିଚିତ ହୁଅନ୍ତି ।'

ମନୋଜ କଥା ମଝିରେ କହିପକାଇଲା — 'ହଁ ସାର୍ ! ଆମ ଶ୍ରେଣୀର ପିଲାମାନେ ଯିଏ ଯେଉଁ ଧର୍ମର ପରିବାରର ହୁଅନ୍ତୁ ନା' କାହିଁକି, ଆମେ ସମସ୍ତେ ତ ଭାଇଭଉଣୀ ପରି ଚଳୁଛୁ । ଜଣଙ୍କର ପର୍ବପର୍ବାଣି ବା ଉତ୍ସବରେ ଅନ୍ୟ ଜଣେ ଯୋଗଦେଇ ଆନନ୍ଦ ଉପଭୋଗ କରୁଛୁ ।'



ମିନିର ମନେପଡ଼ିଗଲା, ଗତ ଇଦ୍-ଉଲ୍-ଫିତର ଉତ୍ସବରେ ତା' ବାପାଙ୍କ ସାଙ୍ଗରେ ସେ ଜାହାନ୍ନାରାଙ୍କ ଘରକୁ ଯାଇଥିଲା । ତା' ବାପା

ଜାହାନାରାଙ୍କ ବାପାଙ୍କୁ କୁଣ୍ଢାଇ ଇଦ୍-ମୁବାରକ୍ ଜଣାଇଥିଲେ । ଜାହାନାରାର ମା' ତାକୁ ସୁଆଦିଆ ସେମିଆଁ ତିଆରି ଇଦ୍‌ଖିରି ଖାଇବାକୁ ଦେଇଥିଲେ । ସେ ମଧ୍ୟ ଜାହାନାରାକୁ କହି ଆସିଥିଲା — "ରଜକୁ ଆମ ଘରକୁ ବୁଲିଆସିବୁ । ଦୁହେଁ ମିଶି ରଜ ଦୋଳି ଖେଳିବା, ପୋଡ଼ପିଠା ଖାଇ ମଜା ମାରିବା ।"

ମନୋଜର କଥା ଶୁଣି ହମିଦ୍ କହିଲା — 'ହଁ ସାର୍ ! ଗତ ବଡ଼ଦିନ ଉତ୍ସବରେ ଆମେ ସବୁ ଡେଭିଡ୍‌ଙ୍କ ଘରକୁ ଯାଇଥିଲୁ । ଏକ୍ସମାସ୍ କେକ୍ କଟାହେଲା । ନାଚ଼ଗୀତରେ ଡେଭିଡ୍‌ଙ୍କ ଘର କମ୍ପେଇ ଦେଲୁ । ତାଙ୍କ ବାପା ବି ଆମମାନଙ୍କ ସାଙ୍ଗରେ ନାଚିଲେ । ବହୁତ ମଜା ହେଲା ।'

ହମିଦ୍‌ର କଥା ମଝିରେ ଡେଭିଡ୍ କହିଲା, 'ଏଥର ବଡ଼ଦିନକୁ ସେଇମିତି ସମସ୍ତେ ଆମ ଘରକୁ ଆସିବ । ଆଜିଠୁଁ ନିମନ୍ତ୍ରଣ ରହିଲା ।'

ପ୍ରଧାନଶିକ୍ଷକ ପିଲାମାନଙ୍କ କଥା ଶୁଣି ବୁଝିଲେ, ପିଲାମାନେ ମିଳିମିଶି ପରସ୍ପର ସ୍ନେହରେ ବାନ୍ଧିହେଇ ଆନନ୍ଦରେ ଚଳୁଛନ୍ତି । ତେଣୁ ତାଙ୍କୁ ଖୁସି ଲାଗିଲା । ସେ କହିଲେ, 'ଏଇମିତି ତମେମାନେ ଯଦି ସବୁଦିନ ମିଳିମିଶି ଚଳିବ, ତେବେ କୌଣସି ପ୍ରକାର ଅସୁବିଧା ହେବ ନାହିଁ ।'

କେତେବେଳୁ ଜୁଲି ତଳକୁ ଚାହିଁ କ'ଣ କେତେ ଭାବି ହେଉଥିଲା । ଦିଦି ତାକୁ ଚାହିଁ ପଚାରିଦେଲେ — 'କିରେ ଜୁଲି ! ତୁ ଏମିତି ତଳକୁ ଚାହିଁ କ'ଣ ଭାବିଚାଲିଛୁ ?'

ଦିଦିଙ୍କୁ ଚାହିଁ ଜୁଲି କହିଲା — 'ମୁଁ ଭାବୁଥିଲି, ସବୁ ମହାପୁରୁଷ ଆଉ ଦେବତା ତ ମଣିଷଙ୍କ ପାଇଁ ମଙ୍ଗଳ କାମ କରନ୍ତି । ତେବେ ସବୁ ମଣିଷ ତାଙ୍କୁ ପୂଜା କରନ୍ତି ନାହିଁ କାହିଁକି ?'

ସୁମିତ୍ରା ଦିଦି ଉତ୍ତର ଦେଇ କହିଲେ — 'ଭଲ ପ୍ରଶ୍ନଟିଏ ଜୁଲି ପଚାରିଛି, କିନ୍ତୁ କଥାହେଲା, ଅନେକ ଲୋକଙ୍କର ଅନେକ ମତ । ଭଗବାନଙ୍କୁ ସହଜରେ ପାଇବା ଉଦ୍ଦେଶ୍ୟରେ କେହି କେହି ତପସ୍ୟା କରନ୍ତି । କେହି

କେହି କହନ୍ତି, ଭଜନ କୀର୍ତ୍ତନ ଆଉ ନାମ ଜପିଲେ; ମୁକ୍ତି ମିଳେ । ଆଉ କେତେ ଜଣ ନିଜ ଶରୀରକୁ କଷ୍ଟ ଦେଇ ଉପବାସ ବ୍ରତ କରନ୍ତି । ପୁଣି କେତେ ଜଣ ଭାବନ୍ତି, ଦାନ କଲେ ପୁଣ୍ୟ ମିଳେ; କିନ୍ତୁ ପ୍ରକୃତରେ ଚିନ୍ତା କରି ଦେଖିଲେ, ଏ ସବୁର ଉଦ୍ଦେଶ୍ୟ ଏକ । ପୁଣି ଲକ୍ଷ୍ୟ ବି ଏକ । ଯିଏ ଯେଉଁ ପଥରେ ଗଲେ ବି ସତ୍ୟପଥକୁ କେହି ଛାଡ଼ିପାରି ନାହାନ୍ତି, କିମ୍ବା ଭବିଷ୍ୟତରେ କେହି ଛାଡ଼ିପାରିବେ ନାହିଁ ।'

ଡେଭିଡ୍ ପିଆଜର ଗ୍ରେପା ଛଡ଼ଉଥିଲା । ତା' ଆଖିରୁ ପାଣି ଠୋପା ଠୋପା ବୋହିପଡୁଥାଏ । ସେ ଆଖିକୁ ଅଧା ବନ୍ଦକରି ହଠାତ୍ ଠିଆ ହେଇ-ପଡ଼ିଲା । ସମସ୍ତଙ୍କ ଦୃଷ୍ଟି ତା'ଉପରେ ପଡ଼ିଲା । ସେ କହିଲା — 'ସାର୍ ! ଆମେ ମଣିଷ ବୋଲି ସିନା କିଏ କେଉଁ ଧର୍ମ ଆଉ ପରିବାରରୁ ଆସିଛି ବୋଲି କହିପାରୁଛୁ, ପଶୁପକ୍ଷୀମାନେ କିଏ କେଉଁ ଧର୍ମରୁ ଆସିଛନ୍ତି, ସେ କଥା କେମିତି ଜଣାପଡ଼େ ?'

ପ୍ରଧାନଶିକ୍ଷକ ଡେଭିଡ୍‌କୁ ବସିବାକୁ ହାତଠାରି କହିଲେ, "ସେ ବିଷୟରେ ମୁଁ ବୁଝେଇଦେଉଛି ଶୁଣ ।

ତମେ ଜାଣିଥିବ, ଆମର ପ୍ରକୃତି ସମସ୍ତଙ୍କ ପାଇଁ ନିୟମ ଠିକ୍ କରିଦେଇଛି । ସେଇ ନିୟମକୁ ଧର୍ମ ବି କୁହାଯାଏ । ଯେମିତି ଜଳର ଧର୍ମ ହେଲା— ତଳକୁ ଗଡ଼ିଯିବା । ଅଗ୍ନିର ଧର୍ମ ହେଲା— ଉପରକୁ ଉଠିବା । ସେଇମିତି ପ୍ରତ୍ୟେକ ଜୀବଜନ୍ତୁଙ୍କର ମଧ୍ୟ ନିଜସ୍ୱ ଧର୍ମ ଅଛି । ସେମାନେ ନିଜ ନିଜର ଧର୍ମପାଳନ କରି ଜୀବନଯାପନ କରନ୍ତି । ସେଇ ଧର୍ମରେ ମଞ୍ଜିରୁ ଗଛ ହୁଏ । ବୃକ୍ଷଲତାରେ ଫୁଲଫଳ ଆସେ । ପୁଣି....'

କଥା ମଝିରେ ମିନି କହିପକାଇଲା — "ସାର୍ ! ଗଛଲତା କ'ଣ କଥା ବୁଝିପାରନ୍ତି ଯେ, ସେମାନେ ପ୍ରକୃତିର ନିୟମକୁ ମାନି ଚଳିବେ ?"

ମିନିର କଥା ଶୁଣି ଅନ୍ୟ ପିଲାମାନେ ବି ଏକ ସଙ୍ଗେ ହସି ଉଠିଲେ ।

ପ୍ରଧାନଶିକ୍ଷକ ମଧ୍ୟ ଟିକେ ହସିପକାଇ କହିଲେ — 'ସେ କଥା ମୁଁ ଭଲ କରି ବୁଝେଇ ଦେଉଛି ଶୁଣ । ତମେ ଦେଖିଥିବ ତମ ବାଡ଼ିରେ କାକୁଡ଼ି ଲତାଟି କେମିତି ସରୁ ସରୁ ସୂତା ବାହାର କରି, ଅନ୍ୟ ଗଛର ଡାଳକୁ ଧରି ଉପରକୁ ଉଠିଯାଏ । ବେଶ୍, ଏହା ହେଲା, ପ୍ରକୃତିର ନିୟମ ବା କାକୁଡ଼ି ଗଛର ଧର୍ମ । ଠିକ୍ ସେଇମିତି ବଣରେ ରହୁଥିବା ବାଘ କ'ଣ କରେ ଜାଣ ?'

ଜୁଲି ତରବର ହେଇ କହିଲା — 'ବାଘ ବଣରେ ଶିକାର କରି ପଶୁମାନଙ୍କୁ ଖାଏ ।'

ମିନି କହିଲା — 'ନାଇଁ ନାଇଁ ସେ ପରା ବଣର ରାଜା !'

'ଜୁଲି ଠିକ୍ କହିଛି । ବାଘ ହେଉଛି, ବଣର ଗୋଟାଏ ବଳୁଆ ଆଉ ଭୟଙ୍କର ପଶୁ । ସେ ଚାହିଁଲେ, ଗୋଟିଏ ଦିନରେ ଅନ୍ୟ ପଶୁଙ୍କୁ ମାରି ଶେଷ କରିଦେଇପାରିବ, କିନ୍ତୁ ସେ ସେପରି କାମ କରେନାହିଁ । କହିଲ ପିଲାଏ, ବାଘ ଏମିତି କାମ କାହିଁକି କରେନାହିଁ ?'



ପ୍ରଧାନଶିକ୍ଷକଙ୍କ ପ୍ରଶ୍ନର ଉତ୍ତର ଦେଲା ହମିଦ୍ । ସେ କହିଲା, 'ସାର୍ ! ବାଘ ହେଉଛି, ବଣର ରାଜା । ସବୁ ପ୍ରଜାଙ୍କୁ ମାରିଦେଲେ, ସେ ଆଉ କାହାକୁ ନେଇ ରାଜ୍ୟଶାସନ କରିବ ? ସେଇଥିପାଇଁ ସେ ତା'ର ସବୁ ପ୍ରଜାଙ୍କୁ ମାରିପକାଏ ନାହିଁ ।'

'ନାଇଁ ନାଇଁ, ସେ କଥା ନୁହେଁ । ପ୍ରକୃତିର ନିୟମ ହେଲା — ପ୍ରତ୍ୟେକ ପ୍ରାଣୀ ପରସ୍ପର ଉପରେ ନିର୍ଭରଶୀଳ । ବାଘ ଯଦି ଅନ୍ୟ ପ୍ରାଣୀମାନଙ୍କୁ ଏକାଦିନେ ମାରିପକାଏ, ତେବେ ସେ କିଛି ଖାଇବାକୁ ନପାଇ ଶେଷରେ ମରିଯିବ । ତେଣୁ ବାଘର ଧର୍ମ ହେଲା, ଗୋଟିଏ ପ୍ରାଣୀକୁ ଶିକାର କରିବ । ଅଳ୍ପ ଅଳ୍ପ କରି ତାକୁ ଆରାମରେ ଖାଇବ । ଶିକାର ଥିଲାବେଳେ ତାକୁ ଯଦି ଆଉ ଗୋଟାଏ ପ୍ରାଣୀ ମିଳିଯାଏ, ତେବେ ସେ ତାକୁ କେବେ ମାରିବ ନାହିଁ । ଏହା ହେଉଛି ବାଘର ଧର୍ମ । ସେ ସେହି ଧର୍ମକୁ ପାଳନ କରିଥାଏ ।'

ଏଭଳି ନୂଆ କଥା ପ୍ରଧାନଶିକ୍ଷକଙ୍କ ଠାରୁ ଶୁଣି ପିଲାମାନେ ଆଶ୍ଚର୍ଯ୍ୟ ହେଇଗଲେ । ସୁମିତ୍ରା ଦିଦି କହିଲେ — 'ସତରେ ଏମିତି ହୁଏ ବୋଲି ମୁଁ ବି ଜାଣି ନଥିଲି । ଏ' ନୂଆ କଥାଟି ମୋତେ ଭାରି ବଢ଼ିଆ ଲାଗିଲା ।'

ପ୍ରଧାନଶିକ୍ଷକ ପୁଣି କହିଲେ, 'କେବଳ ବାଘ ନୁହେଁ, ପ୍ରତ୍ୟେକ ପ୍ରାଣୀ, ବୃକ୍ଷଲତା ଆଉ କୀଟ-ପତଙ୍ଗ ପ୍ରକୃତିର ନିୟମ ବା ନିଜ ନିଜର ଧର୍ମକୁ ପାଳନ କରିଆସୁଛନ୍ତି । ଫଳରେ ପ୍ରାଣୀ ଜଗତର ଶୃଙ୍ଖଳା ରକ୍ଷା ହେଇପାରୁଛି ।'

ମନୋଜ ପଚ୍ଚରିଲା — 'ସାର୍ ! ମଣିଷ କ'ଣ ପ୍ରକୃତିର ନିୟମରେ ଚଳୁଛି ?'

ମନୋଜ ପ୍ରଶ୍ନର ଉତ୍ତରେ ଦେଇ ରମେଶ ସାର୍ କହିଲେ — 'ସେ କଥା ମୁଁ କହିଦେଉଛି । ମଣିଷ ହେଉଛି ସବୁଠାରୁ ବୁଦ୍ଧିମାନ ପ୍ରାଣୀ । ତା'ର ଚିନ୍ତାଶକ୍ତି ପ୍ରଖର । ତେଣୁ ନିଜକୁ ନିଜେ ସେ ଶୃଙ୍ଖଳିତ ହୋଇ ସୁସ୍ଥ ସମାଜ ଗଠନ କରିପାରୁଛି । ଭଲମନ୍ଦ ସେ ଜାଣିପାରୁଛି । ଅନ୍ୟକୁ ସାହାଯ୍ୟ କରୁଛି, ପୁଣି ଅନ୍ୟଠାରୁ ସାହାଯ୍ୟ ନେଇପାରୁଛି । ସମସ୍ତେ କିପରି ସୁଖରେ ଆଉ ଶାନ୍ତିରେ ରହିପାରିବେ, ସେଥିପାଇଁ ସେ ନିଜେ କେତୋଟି ନିୟମ ତିଆରି କରିଛି । ସେହି ଧରାବନ୍ଧା ନିୟମରେ ସମସ୍ତେ ଚଳିବାରୁ କାହାରି କିଛି ଅସୁବିଧା ହୁଏନାହିଁ । ଫଳରେ ମଣିଷକୁ ପ୍ରକୃତିର ନିୟମ ଉପରେ ନିର୍ଭର କରିବାକୁ ପଡ଼େନାହିଁ । ସେ ନିଜ ତିଆରି ଧର୍ମରେ ଚଳେ ।'

ଡେଭିଡ୍ ପଚାରିଲା — 'ତେବେ କ'ଣ ଏହି ନିୟମକୁ ଧର୍ମ କୁହାଯାଏ କି' ସାର୍ ?'

ପ୍ରଧାନଶିକ୍ଷକ ଉତ୍ତର ଦେଇ କହିଲେ — 'ତମେ ଠିକ୍ କହିଛ । ଗୋଟିଏ ଗୋଟିଏ ଅଞ୍ଚଳର ମହାପୁରୁଷ ଆଉ ସାଧୁସନ୍ଥମାନେ ଯେଉଁ ନିୟମ ତିଆରି କରିଦେଇଥିଲେ, ପରବର୍ତ୍ତୀ ସମୟରେ ସେସବୁ ଗୋଟିଏ ଗୋଟିଏ ବୃହତ୍ ଅଞ୍ଚଳର ଧର୍ମନୀତିରେ ପରିଣତ ହେଇଗଲା । ତାକୁ ମାନି ଚଳିବା ଏକ ଧର୍ମକାର୍ଯ୍ୟ ବୋଲି ଗଣାହେଲା ।

ଆମ ଦେଶରେ ସବୁଠାରୁ ବେଶୀ ସଂଖ୍ୟାରେ ହିନ୍ଦୁଧର୍ମର ଲୋକେ ବାସ କରନ୍ତି । ସମୁଦାୟ ଲୋକ ସଂଖ୍ୟାର ଏମାନେ ହେଉଛନ୍ତି ପ୍ରାୟ ପଞ୍ଚାଅଶୀ ଭାଗ । ଏହି ଧର୍ମର ନୀତିଗୁଡ଼ିକ ପ୍ରଥମେ ଅତି ସରଳ ଥିଲା । ପରେ ସେଗୁଡ଼ିକ ଏତେ ଜଟିଳ ହେଇଗଲା ଯେ, ସାଧାରଣ ଲୋକେ ଆଉ ସେ ଧର୍ମ-ନୀତିକୁ ବୁଝିପାରିଲେ ନାହିଁ । ସେହି ଅସୁବିଧାକୁ ଦୂର କରିବାକୁ ଯାଇ ମହାବୀର ଜୈନ — ଜୈନଧର୍ମ, ଗୌତମବୁଦ୍ଧ — ବୌଦ୍ଧଧର୍ମ ପ୍ରତିଷ୍ଠା କଲେ । ଅନେକ ଲୋକ ସେ ଧର୍ମକୁ ମଧ୍ୟ ଗ୍ରହଣ କରିଥିଲେ ।



ପୂର୍ବରୁ ହିନ୍ଦୁଧର୍ମର ସାରକଥା ଥିଲା, ଭଗବାନ୍‌ଙ୍କୁ ଜାଣିବା ଏବଂ ତାଙ୍କ ସହିତ ମିଳିତ ହେବା । ଅହିଂସା ଓ ଜୀବେଦୟା ସେ ଦିଗରେ ଏକ ମାର୍ଗ ଥିଲା । ପରେ ପରେ ଜୈନଧର୍ମ ଓ ବୌଦ୍ଧଧର୍ମରେ ମଧ୍ୟ ସେହି ଅହିଂସା ଓ ଜୀବେଦୟାକୁ ଧର୍ମନୀତି ଭାବରେ ଗ୍ରହଣ କରାଗଲା ।



ହମିଦ୍ ପରିବା ଝୁଡ଼ିଟାକୁ ଚୁଲିପାଖରେ ଥୋଇଦେଇ କହିଲା — "ସାର୍ ! ଇସ୍‌ଲାମ୍ ଧର୍ମ କେମିତି ହେଲା ? ସେ କଥା ତ କହିଲେ ନାହିଁ ।"

ରମେଶ ସାର୍ ହମିଦ୍ ପ୍ରଶ୍ନର ଉତ୍ତର ଦେଇ କହିଲେ — 'ତମେ ଆରବ ଦେଶର ନାଁ' ଶୁଣିଥିବ । ସେଇଠି ଜନ୍ମ ନେଇଥିଲେ, ମହାପୁରୁଷ . ମହମ୍ମଦ । ସେତେବେଳେ ଆରବର ଲୋକେ ବଡ଼ ଅଶାନ୍ତି ଆଉ କଷ୍ଟରେ ଥା'ନ୍ତି । ଏହି ଦୁଃଖରୁ ଲୋକମାନଙ୍କୁ ଉଦ୍ଧାର କରିବା ପାଇଁ ଆଉ ଶାନ୍ତି ପ୍ରତିଷ୍ଠା ପାଇଁ ସେ ଇସ୍‌ଲାମ୍ ଧର୍ମର ପ୍ରଚାର କଲେ । ଇସ୍‌ଲାମ୍ ଶବ୍ଦର ଅର୍ଥ 'ଶାନ୍ତି' । ଧୀରେ ଧୀରେ ଏହି ଧର୍ମ ଲୋକପ୍ରିୟ ହେଲା । ବହୁଲୋକ ଇସ୍‌ଲାମ୍ ଧର୍ମ ଗ୍ରହଣ କରି ମୁସଲମାନ୍ ଭାବରେ ପରିଚିତ ହେଇଥିଲେ ।



ଡେଭିଡ୍ ବଡ଼ ଆଗ୍ରହରେ ରମେଶ ସାର୍‌ଙ୍କ କଥା ଶୁଣୁଥିଲା । ସେ କହିଲା — ଖ୍ରୀଷ୍ଟଧର୍ମ ବିଷୟରେ ଟିକେ କୁହନ୍ତୁ ସାର୍ । ଏତେବେଳେଯାଏ, ସୁମିତ୍ରା ଦିଦି ଚୁପ୍‌ଚାପ୍ ବସି ସମସ୍ତଙ୍କ କଥା ଶୁଣୁଥିଲେ । ଡେଭିଡ୍‌ର କଥା ଶୁଣି ସେ ନୀରବ ରହିପାରିଲେ ନାହିଁ । ଡେଭିଡ୍‌ର ପିଠିରେ ତାଳିମାରି କହିଲେ, 'ମହାତ୍ମା ଯୀଶୁ ପାଲେଷ୍ଟାଇନ୍ ନାମକ ଦେଶରେ ଖ୍ରୀଷ୍ଟଧର୍ମ ପ୍ରତିଷ୍ଠା କରିଥିଲେ ।



ସେ ସମଗ୍ର ବିଶ୍ୱବାସୀଙ୍କୁ ଗୋଟିଏ ପରିବାରର ଲୋକ ବୋଲି ଭାବୁଥିଲେ । ସତ୍ୟ-ଶାନ୍ତି ଆଉ ସୁଖର ସନ୍ଧାନ ଥିଲା — ମହାତ୍ମା ଯୀଶୁଙ୍କର ଲକ୍ଷ୍ୟ । ତାଙ୍କର ଅନୁଗାମୀମାନେ ଯୀଶୁଙ୍କୁ ଈଶ୍ୱରଙ୍କ ପୁତ୍ର ବା ଦୂତ ବୋଲି ମନେକରନ୍ତି ।"

ସୁମିତ୍ରା ଦିଦିଙ୍କ କଥା ଶେଷ ହେବାରୁ ପ୍ରଧାନଶିକ୍ଷକ କହିଲେ, 'ଗୋଟି ଗୋଟି କରି ତମେ ତ ସବୁ ଧର୍ମ ବିଷୟରେ ପଗ୍ଚରି ବୁଝିଲ ।'

ପ୍ରଧାନ ଶିକ୍ଷକଙ୍କ କଥା ନ ସରୁଣୁ ଗୁରୁଦୟାଲ ଆସି ତାଙ୍କ କାନ ପାଖରେ କ'ଣ କହୁଥିବାର ଦେଖାଗଲା । ପ୍ରଧାନ ଶିକ୍ଷକ ତାକୁ ବସିବାକୁ ଠାରି ଦେଇ ପୁଣି କହିଲେ, 'ଶୁଣ ପିଲାଏ; ଗୁରୁଦୟାଲ ଭଲ କଥାଟିଏ ମନେ ପକାଇ ଦେଇଛି । ମୁଁ ଆମ ଦେଶର ଆଉ ଗୋଟିଏ ଧର୍ମ ବିଷୟରେ କହିବାକୁ ଭୁଲିଯାଇଥିଲି । ସେ ଧର୍ମଟି ହେଲା -- ଶିଖ୍ ଧର୍ମ । ଗୁରୁନାନକ ହେଉଛନ୍ତି,



ଏହି ଧର୍ମର ପ୍ରତିଷ୍ଠାତା । ତାଙ୍କ ପ୍ରଗ୍ଚରିତ ବାଣୀ ଗ୍ରନ୍ଥ ସାହେବ ପୁସ୍ତକରେ ଛପା ଯାଇଛି । ଏହା ଶିଖ୍‌ମାନଙ୍କର ପ୍ରଧାନ ଧର୍ମଗ୍ରନ୍ଥ । ଗୁରୁନାନକଙ୍କ ମତରେ ମଣିଷ କେବଳ ପ୍ରେମ ମାଧ୍ୟମରେ ଈଶ୍ୱରଙ୍କର ନିକଟବର୍ତ୍ତୀ ହୋଇପାରିବ ।

ଈଶ୍ୱର ହେଉଛନ୍ତି, ଏକ, ଆଉ ମାନବ ଜାତି ହେଉଛି ଏକ ।

ଏହି ସବୁ ମୁଖ୍ୟ ଧର୍ମ ବ୍ୟତୀତ ଆହୁରି କେତୋଟି ଧର୍ମର ଲୋକେ ମଧ୍ୟ ଆମ ଦେଶରେ ବସବାସ କରନ୍ତି । ଭାରତ ସ୍ୱାଧୀନତା ଲାଭ କଲାପରେ ଆମ ଦେଶର ଶାସନ ଭାର ଆମ ଲୋକଙ୍କ ହାତକୁ ଆସିଲା । ୧୯୫୦ ମସିହା ଜାନୁଆରୀ ୨୬ ତାରିଖରୁ ଦେଶରେ ନୂତନ ସମ୍ବିଧାନ ବା ଶାସନ ଖସଡ଼ା କାର୍ଯ୍ୟକାରୀ ହେଲା । ସମ୍ବିଧାନ ରଚୟିତା ଭାରତରତ୍ନ ଡକ୍ଟର ଭୀମ ରାଓ ଓ ଆମ୍ବେଦକର ଆମ ଦେଶର ବିଭିନ୍ନ ଧର୍ମର ଲୋକଙ୍କ ସ୍ୱାର୍ଥରକ୍ଷା କରିବା ଉଦ୍ଦେଶ୍ୟରେ ଚିନ୍ତା କରିଥିଲେ । ତେଣୁ ସେ ଭାରତକୁ ଏକା ଧର୍ମ ନିରପେକ୍ଷ ରାଷ୍ଟ୍ର ହିସାବରେ ଘୋଷଣା କରିବା ପାଇଁ ସଂବିଧାନରେ ବ୍ୟବସ୍ଥା ରଖିଥିଲେ ।'

'ଧର୍ମ ନିରପେକ୍ଷ'ଭଳି ନୂଆ ଶବ୍ଦଟିଏ ଶୁଣି ମିନି କିଛି ବୁଝିପାରିଲା ନାହିଁ । ସେ ଦିଦିଙ୍କ ପାଖକୁ ଲାଗିଯାଇ ପଚାରିଲା, ''ଦିଦି ! ଧର୍ମ ନିରପେକ୍ଷ ରାଷ୍ଟ୍ର କଣ ?''

ପ୍ରଧାନ ଶିକ୍ଷକଙ୍କୁ ଚାହିଁ ସୁମିତ୍ରା ଦିଦି ହସି ଦେଇ କହିଲେ, 'ମୁଁ ସେ କଥା ପିଲାଙ୍କୁ ବୁଝେଇଦଉଛି ସାର ! ଧର୍ମ ନିରପେକ୍ଷର ଅର୍ଥ ହେଲା — କୌଣସି ଧର୍ମର ପକ୍ଷ ନ ନେବା । ଆମ ଦେଶର ସରକାର କୌଣସି ଧର୍ମର ପ୍ରଚାର କରିବେ ନାହିଁ କିମ୍ବା କୌଣସି ଧର୍ମ ଗ୍ରହଣ କରିବାକୁ କାହାରିକୁ ବାଧ୍ୟ କରିବେ ନାହିଁ । କାରଣ କ'ଣ ହୋଇଥିବ କହିଲ ? କିଏ କହିପାରିବ ?' ଡେଭିଡ୍ କହିଲା, 'ମୁଁ କହିଦେବି ଦିଦି ! ଆମ ଦେଶରେ ସମସ୍ତଙ୍କୁ ସମାନ ଅଧିକାର ମିଳିଛି । ଧର୍ମ ବିଚାରରେ ସରକାର କାହାରି ପକ୍ଷନେଲେ ସେ ନିୟମ ବାଧା ପାଇବ ।'

ସୁମିତ୍ରା ଦିଦି କହିଲେ, 'ଠିକ୍ କହିଛି ଡେଭିଡ୍ । ଭାରତରେ ବାସ କରୁଥିବା ପ୍ରତ୍ୟେକ ଭାରତୀୟଙ୍କ ଧର୍ମ ବିଷୟରେ ସ୍ୱାଧୀନତା ଦିଆଯାଇଛି । ନିଜ ଇଚ୍ଛାରେ ଯିଏ ଯେଉଁ ଦେବତା, ଈଶ୍ୱର ଓ ଗୁରୁଙ୍କୁ ପୂଜା, ଉପାସନା

କରିପାରିବେ, ସେଥିରେ କେହି ବାଧା ଦେବେ ନାହିଁ । ପ୍ରତ୍ୟେକ ଧର୍ମର ଲୋକଙ୍କୁ ସମାନ ସୁବିଧା ଦିଆଯିବ । କେହି କୌଣସି ଧର୍ମକୁ ଘୃଣା କରି ପାରିବେ ନାହିଁ । ଯେହେତୁ ସବୁ ଧର୍ମର ସାର ନୀତି ସମାନ । ସତ୍ୟ, ଶାନ୍ତି ଅହିଂସା ସବୁ ଧର୍ମର ମୂଳନୀତି । ତେଣୁ ଆମ ଦେଶର ଲୋକେ ସବୁ ଧର୍ମ ପ୍ରତି ସମ୍ମାନ ପ୍ରଦର୍ଶନ କରନ୍ତି । କ'ଣ ଏବେ ବୁଝିଲୁ ମିନି ?'

ମିନି ପୁଣି ପଚ୍ଚରିଲା, ''ଦିଦି ! ଆଗରୁ କ'ଣ ଲୋକେ ଏ'କଥା ବୁଝି ନ ଥିଲେ ?''

ଏଥର ପ୍ରଧାନଶିକ୍ଷକ ମିନି ପ୍ରଶ୍ନର ଉତ୍ତର ଦେଇ କହିଲେ, 'ହଁ ଆଗ କାଳରେ ଯେଉଁମାନେ ଅନ୍ୟର ଧର୍ମ ପୁସ୍ତକ ପଢ଼ିଥିଲେ ବି'ତାଙ୍କ ଧର୍ମ ବିଷୟରେ ପଚ୍ଚରି ବୁଝିଥିଲେ, ସେମାନେ ଜାଣିଥିଲେ; ସବୁ ଧର୍ମର ନୀତି ସମାନ ।

ପ୍ରାୟ ଦୁଇ ହଜାର ବର୍ଷ ତଳେ ଉତ୍କଳର ପ୍ରଥମ ସମ୍ରାଟ ଖାରବେଳ ଜୈନଧର୍ମ ଗ୍ରହଣ କରିଥିଲେ ସତ; କିନ୍ତୁ ସେ ଅନ୍ୟ ସବୁ ଧର୍ମକୁ ଆଦର କରୁଥିଲେ । କାରଣ ସେ ଜାଣିଥିଲେ, ସବୁ ଧର୍ମର ମୂଳକଥା ଏକ । ତାଙ୍କ ଶାସନ କାଳରେ ସବୁ ଧର୍ମର ଲୋକେ ସମାନ ନ୍ୟାୟ ପାଉଥିବାରୁ , ତାଙ୍କୁ ଜଣେ ଧର୍ମ ନିରପେକ୍ଷ ସମ୍ରାଟ୍ ହିସାବରେ ସ୍ୱତନ୍ତ୍ର ଆସନ ଦିଆଯାଏ ।



ସେଇଭଳି ମୋଗଲ ସମ୍ରାଟ୍ ଆକବର ସବୁ ଧର୍ମର ଧର୍ମନୀତିକୁ ପଢ଼ି ବୁଝିଲେ-ସବୁ ଧର୍ମ ସମାନ । ଶେଷରେ ସବୁ ଧର୍ମର ସାର ନୀତିକୁ ନେଇ ଦୀନ୍-ଇ-ଲାହି ନାମକ ଗୋଟାଏ ନୂଆ ଧର୍ମର ପ୍ରଚ୍ଚର କରିଥିଲେ । ତେଣୁ ସେ ଜଣେ ଧର୍ମ ନିରପେକ୍ଷ ସମ୍ରାଟ ବା ମହାନୁଭବ ଆକବର ଭାବରେ ପରିଚ୍ଚିତ ହୋଇ ପାରିଥିଲେ ।

ସେହିପରି ରାଜା ରାମମୋହନ ରାୟ ସବୁ ଧର୍ମର ଧର୍ମଗ୍ରନ୍ଥ ପାଠ କରି ବୁଝିଲେ, ସବୁ ଧର୍ମର ସାରତତ୍ତ୍ୱ ସମାନ । ଈଶ୍ୱର ଏକ । ଏକ ଈଶ୍ୱରଙ୍କୁ ସମସ୍ତ ଭାରତୀୟ ଉପାସନା କରିବା ପାଇଁ ସେ ବ୍ରାହ୍ମ ସମାଜ ସ୍ଥାପନ କରିଥିଲେ । ଧର୍ମର ସଂସ୍କାର ମାଧ୍ୟମରେ ସମାଜ ସଂସ୍କାର ଥିଲା, ତାଙ୍କ ଜୀବନର ଲକ୍ଷ୍ୟ । ତେଣୁ ସେ ଜଣେ ଧର୍ମ ନିରପେକ୍ଷ ସମାଜ ସଂସ୍କାରକ ଭାବେ ପରିଚିତ ହୋଇପାରିଛନ୍ତି ।'

ମନୋଜ କହିଲା, "ସାର ! ମୋର ଆଉ ଜଣଙ୍କ କଥା ମନେପଡ଼ିଗଲା । ମୌଲାନା ଆଜାଦ୍ ଥିଲେ, ଜଣେ ନିଃସ୍ୱାର୍ଥପର ଦେଶସେବକ । ସବୁ ଧର୍ମ ବିଷୟରେ ତାଙ୍କର ଅଗାଧ ଜ୍ଞାନ ଥିଲା । ଥରେ ମୁସଲମାନମାନେ ତାଙ୍କୁ ତାଙ୍କ ସଂପ୍ରଦାୟର 'ଇମାମ୍' ଅର୍ଥାତ୍ ସର୍ବଶ୍ରେଷ୍ଠ ଧର୍ମଗୁରୁ ପଦରେ ବରଣ କରିବାକୁ ନିମନ୍ତ୍ରଣ କରିଥିଲେ; କିନ୍ତୁ ମୌଲାନା ଆଜାଦ୍ ସେଥିରେ ରାଜି ନ ହୋଇ କହିଥିଲେ, 'ମୁଁ ଗୋଟାଏ ସଂପ୍ରଦାୟର ନେତା ହୋଇ ରହିବାକୁ ଚାହେଁନା । ବରଂ ଧର୍ମମତ ସଂପ୍ରଦାୟ ନିର୍ବିଶେଷରେ ଧନୀ ଦରିଦ୍ର ସମସ୍ତଙ୍କର ଆଦରଣୀୟ ହେବାକୁ ଚାହେଁ ।' ଏକଥା ମୁଁ ଗୋଟିଏ ଗପ ବହିରୁ ପଢ଼ିଥିଲି ।" ଦିଦି ତା' କଥା ଶୁଣି କହିଲେ, "ବାଃ ! ବଢ଼ିଆ କଥାଟି ମନେରଖିଛୁ ତ ? ଦେଖ୍, ଏଥିରୁ ମଧ୍ୟ ଆଜାଦ୍‌ଙ୍କର ଧର୍ମ ନିରପେକ୍ଷତାର ପରିଚୟ ମିଳେ ।"

ଜୁଲି ବଡ଼ ଆଗ୍ରହରେ ଦିଦି ଆଉ ସାର୍‌ଙ୍କ କଥା ଶୁଣୁଥିଲା । ସେ କହିଲା - 'ସାର ! ଏଇଠି ମୋ ମନରେ ଗୋଟାଏ ପ୍ରଶ୍ନ ଉଠୁଛି, ଅନୁମତି ଦେଲେ ପଚାରିବି ।'

ପ୍ରଧାନଶିକ୍ଷକ ଖୁସି ହେଇ କହିଲେ - 'କିରେ ଅନୁମତି କ'ଣ ? ଆମର ପରା ଗପ ସପ ଚାଲିଛି, ଇଏ କ'ଣ କ୍ଲାସ୍‌ରୁମ୍ ହେଇଛି ଯେ, ଅନୁମତି ମାଗୁଛୁ ? କ'ଣ ପଚାରିବାର ଅଛି ପଚାର ।'

ପ୍ରଧାନଶିକ୍ଷକଙ୍କଠାରୁ ସାହସ ପାଇ ଜୁଲି କହିଲା - 'ସାର ! ହିନ୍ଦୁ, ମୁସଲମାନ, ଶିଖ୍, ଖ୍ରୀଷ୍ଟିୟାନ ସବୁ ଧର୍ମର ଲୋକେ ତ ଆମ ଦେଶର ସମାନ

ଅଧିକାର ପାଇଛନ୍ତି, ତେବେ ମଝିରେ ମଝିରେ ସେମାନଙ୍କ ମଧ୍ୟରେ ଝଗଡ଼ା କାହିଁକି ହୁଏ ?'

ଜୁଲିର ପ୍ରଶ୍ନ ଶୁଣି ପ୍ରଧାନ ଶିକ୍ଷକ ଦୀର୍ଘଶ୍ୱାସଟିଏ ପକାଇ କହିଲେ, 'ବେଳେ ବେଳେ କେତେକ ସ୍ୱାର୍ଥପର ଲୋକ ନିଜର ସ୍ୱାର୍ଥ ହାସଲ ପାଇଁ ଏଭଳି ସାଂପ୍ରଦାୟିକ ଉତ୍ତେଜନା ସୃଷ୍ଟି କରାଇଥାଆନ୍ତି । ସେମାନେ ଭାବନ୍ତି, ଏଭଳି କଲେ - ନିଜ ସଂପ୍ରଦାୟ ଲୋକଙ୍କ ବଳରେ ନିଜ ସ୍ୱାର୍ଥ ହାସଲ ହେଇପାରିବ; କିନ୍ତୁ, ସେମାନଙ୍କର ଅପଚେ଼ଷ୍ଟା ବିଫଳ ହୁଏ । ଶେଷରେ ନିଜ ଦୁଷ୍ଟପଣିଆ ଲୋକଙ୍କ ଆଗରେ ଧରା ପଡ଼ିଯାଏ ।'

ହମିଦ୍ କହିଲା, 'ଠିକ୍ କଥା କହିଲେ ସାର୍ । ଆମ ଭିତରେ ପରସ୍ପର ସ୍ନେହ ଆଉ ବୁଝାମଣା ରହିଲେ, ସ୍ୱାର୍ଥପର ଲୋକ ତ ନିଶ୍ଚୟ ଧରାପଡ଼ିଯିବ ।'

ଡେଭିଡ୍ କହିଲା, 'ସାର୍ ! ଏଇ ଧର୍ମ ନିରପେକ୍ଷ ନୀତି ପାଇଁ ତା'ହେଲେ, ଆମେ ସମସ୍ତେ ଗୋଟିଏ ବିଦ୍ୟାଳୟରେ ପାଠ ପଢ଼ିପାରୁଛେ ?'

ନିତ୍ୟାନନ୍ଦବାବୁ ପିଲାଙ୍କ କଥା ଶୁଣି ବୁଝିପାରିଲେ, ପିଲାମାନେ ଧର୍ମନିରପେକ୍ଷତା ବିଷୟରେ ଅନେକ କଥା ଶୁଣି ସାରିଲେଣି । ସେ କଥାଟିକୁ ଆଉଟିକେ ଆଗକୁ ନେଇଯିବାକୁ କହିଲେ- 'ଖାଲି ପାଠପଢ଼ା ନୁହେଁ, ଖେଳିକିରି କ୍ଷେତ୍ରରେ ଖେଳ ପଡ଼ିଆରେ ଯେଉଁଠି ଦେଖ ସେଇଠି ସବୁ ଧର୍ମ ସବୁ ସଂପ୍ରଦାୟର ଲୋକ ଏକଜୁଟ୍ ହେଇ ଆମ ଦେଶର ସୁନାମ ବଢ଼େଇ ଚାଲିଛନ୍ତି । କୌଣସି ଜାଗାରେ ଧର୍ମକୁ ଆଖି ଆଗରେ ରଖି ବଗ୍ଚର କରାଯାଏ ନାହିଁ । କେବଳ ଯିଏ ଯୋଗ୍ୟ ସିଏ ଆଗକୁ ଯାଇପାରେ । ଏ' ହେଲା ଧର୍ମ-ନିରପେକ୍ଷତାର ମନ୍ତ୍ର ।

ଇଂରେଜ ଅମଳରେ ଆମ ଜାତିର ପିତା ମହାତ୍ମାଗାନ୍ଧୀ ବୁଝିଥିଲେ, ବିଭିନ୍ନ ସଂପ୍ରଦାୟ, ବିଭିନ୍ନ ଧର୍ମର ଲୋକେ ଏକଜୁଟ ହେଲେ ହିଁ ଭାରତ-ବର୍ଷକୁ ସ୍ୱାଧୀନ କରିହେବ । ସତକୁ ସତ ତାଙ୍କରି ଡାକରାରେ ସମଗ୍ର

ଭାରତବାସୀ ଏକ ହେବାରୁ, ଦେଶ ସ୍ୱାଧୀନ ହେଇପାରିଲା । ତେଣୁ ସେ ତାଙ୍କର ପ୍ରିୟ ଭଜନରେ ଗାଇଛନ୍ତି - "ଈଶ୍ୱର ଆଲ୍ଲା ତେରେ ନାମ, ।"



ପିଲାମାନେ ଏକ ସ୍ୱରରେ ଗୀତଟିର ଅନ୍ୟ ପଦଟିକୁ ଗାଇଉଠିଲେ- "ସବ୍ କୋ ସନ୍‌ମତି ଦେ' ଭଗବାନ୍ ।"

ଏଥର ପ୍ରଧାନଶିକ୍ଷକ ଉଠି ଠିଆହେଲେ । ପିଲାମାନେ ଜାଣିଲେ, ଆଲୋଚ଼ନା ଏତିକିରୁ ଶେଷ ହେଲା ।

ସୁମିତ୍ରା ଦିଦି ଗ୍ଲଲିଲେ ଚୁଲି ପାଖକୁ । ସମସ୍ତେ ମିଳିମିଶି ରୋଷେଇ କାମ ଶେଷ କରିଦେଲେ । ଠିକ୍ ସମୟରେ ବଣଭୋଜି ଖିଆ ହେଇଗଲା । ଝରଣା ତଳେ ଥିବା ନଈକୂଳରେ ବୁଲି ଆସିବାକୁ ପିଲାମାନଙ୍କର ମନ ହେଉଥାଏ ।

ପ୍ରଧାନଶିକ୍ଷକ ପିଲାମାନଙ୍କୁ ପାହାଡ଼ ଉପରକୁ ନେଇ କେତେ ନୂଆ ନୂଆ ଜଙ୍ଗଲି ଔଷଧ ଗଛ ଚ଼ିହ୍ନେଇ ଦେଲେ । ଜୁଲି, ମିନି ଜଙ୍ଗଲି କୋଳି ତୋଳି ଖାଇଲେ । ହମିଦ୍ ସେଇ ଔଷଧ ଗଛର ପତ୍ର, ଚ଼େର ସଂଗ୍ରହ କରି ପକେଟ୍‌ରେ ରଖିଲା । ମନୋଜ କେତେଟା ଚ଼ିକ୍କଣ ପଥର ସଂଗ୍ରହ କରି

ଧରିଲା । ସୁମିତ୍ରା ଅପା ପିଲାମାନଙ୍କ ସାଙ୍ଗରେ ମିଶି ପୁଳାଏ ବଣମଲ୍ଲୀ ତୋଳି ଆଣିଲେ । ବୁଲାବୁଲି ସାରିଲା ବେଳକୁ ସୂର୍ଯ୍ୟ ପଶ୍ଚିମ ଦିଗରେ ଲାଲ ଟହଟହ ଦିଶୁଥାଆନ୍ତି ।

ପିଲାମାନେ ଜିନିଷପତ୍ର ବନ୍ଧାବନ୍ଧି କରି ଘରମୁହାଁ ହେଲେ । ପ୍ରଧାନ-ଶିକ୍ଷକ ବାଟରେ ପିଲାଙ୍କୁ ପଚ୍ଚରିଲେ, 'ଆଜିର ବଣଭୋଜିଟା କେମିତି ଲାଗିଲା ପିଲାଏ ?' ସମସ୍ତେ ଏକା ସଂଗେ କହିଉଠିଲେ, "ବହୁତ ବଢ଼ିଆ ହେଲା ସାର୍ ।"

ହମିଦ୍, ମନୋଜ ଆଉ ଡେଭିଡ୍ କହିଲେ, 'ଆଜିର ଆଲୋଚ଼ନାଟା ସବୁଠୁ ଭଲ ହେଲା, ଆମେ ଧର୍ମ ବିଷୟରେ ଆଗରୁ ଏତେକଥା ତ ଜାଣି ନ ଥିଲୁ ସାର୍ ।'

ପ୍ରଧାନଶିକ୍ଷକ ପୁଣି ବୁଝେଇ କହିଲେ, 'ହଁ ପିଲାଏ, ନୂଆ ନୂଆ କଥା ଜାଣିବାକୁ ତମେମାନେ ଅଧିକରୁ ଅଧିକ ବହି ପଢ଼ିବ, ବଡ଼ ମଣିଷଙ୍କ ଜୀବନୀ ପଢ଼ିବ । ଏତିକି ମନେରଖିବ ଯେ, ତମେମାନେ କେବେ ପରସ୍ପର ମଧ୍ୟରେ ଝଗଡ଼ା ଲାଗିବ ନାହିଁ । ତମେମାନେ ହେଉଛ, ଆମ ଦେଶର ଭବିଷ୍ୟତ । ତମେ ଯଦି ଚ୍ହିଁବ, ବିଶ୍ୱ ଦରବାରରେ ଆମ ଦେଶର ସୁନାମ ବଢ଼େଇପାରିବ । କୌଣସି ଧର୍ମ, ସଂପ୍ରଦାୟ ବା ଗୋଷ୍ଠୀ ଆମଠାରୁ ଅଲଗା ନୁହେଁ, ଏ' କଥାଟାକୁ ଭଲ ଭାବେ ମନେରଖିବାକୁ ପଡ଼ିବ । ଦେଖିବ - ଦିନ ଆସିବ, ଆମ ଦେଶ ହେବ ବିଶ୍ୱର ଆଦର୍ଶ ।'

ଏହା ମଧ୍ୟରେ ଚ଼ଲାରାସ୍ତା ଶେଷ ହେଇଯାଇଥାଏ । ଛକରେ ବସ୍ ଆସି ଠିଆହେଲା । ପିଲାମାନେ ଗୋଟି ଗୋଟି ହେଇ ବସରେ ଚ଼ଢିଲେ । ସେମାନଙ୍କର ମନେପଡ଼ିଗଲା, ଯେଉଁ ଗୀତଟି ଗାଇ ଗାଇ ସେମାନେ ଆସିଥିଲେ, ତାକୁ ପୁଣି ଆରମ୍ଭ କରିଦେଲେ ।

'ସକଳ ଧରମ ମିଳନ ପୀଠ ଏ'- ଭାରତ ଆମରି ମା ।'

ଜୟହିନ୍ଦ୍



୧୯୯୨/୧୯୯୩ ବର୍ଷ ପାଇଁ ଶ୍ରେଷ୍ଠ ଶିଶୁ-ସାହିତ୍ୟ ଭାବେ ବଣଭୋଜି ପୁସ୍ତକକୁ ପୁରସ୍କୃତ କରୁଛନ୍ତି ଭାରତୀୟ ସାହିତ୍ୟ ଏକାଡେମିର ଅଧ୍ୟକ୍ଷ ତଥା ନ୍ୟାସନାଲ ବୁକ୍ ଟ୍ରଷ୍ଟର ଅଧ୍ୟକ୍ଷ ଜ୍ଞାନପୀଠ ପୁରସ୍କାର ବିଜେତା ଡ. ୟୁ. ଆର୍. ଅନନ୍ତ ମୂର୍ତ୍ତି ।

# ଅରୁଣ-ତରୁଣ

## ସୂଚନା, ସାହିତ୍ୟ-ସଂସ୍କୃତିର ବିକାଶରେ ବ୍ରତୀ

**ଆମ ପ୍ରକାଶିତ ନୂତନ ପୁସ୍ତକ ବର୍ତ୍ତମାନ ମିଳୁଛି ।**

| | ପୁସ୍ତକର ନାମ | ମୂଲ୍ୟ |
|---|---|---|
| ୧ । | ଓଡ଼ିଆ ଶିଶୁଗଳ୍ପର ସ୍ୱରୂପ ଓ ବିକାଶ | ଟ ୧୦୦.୦୦ |
| ୨ । | ପିଲାଙ୍କ ସାହିତ୍ୟର କଳା ଓ କୌଶଳ | ଟ ୨୫.୦୦ |
| ୩ । | ରାଉରକେଲା ଦର୍ପଣ | ଟ ୪୦.୦୦ |
| ୪ । | କେନ୍ଦୁଝର ଦର୍ପଣ | ଟ ୪୦.୦୦ |
| ୫ । | ବଣଭୋଜ (ଜାତୀୟ ପୁରସ୍କାରପ୍ରାପ୍ତ) | ଟ ୧୦.୦୦ |
| ୬ । | ସଦାନନ୍ଦବାବୁଙ୍କ ସଂସାର (ଲଳିତଗଳ୍ପ) | ଟ ୪୦.୦୦ |
| ୭ । | ଶୁଣିମା ହେଉ (ଲଳିତଗଳ୍ପ) | ଟ ୧୦.୦୦ |
| ୮ । | ବଜ୍ରପୁରୁଷ ବାଜପେୟୀ (ଜୀବନୀ) | ଟ ୧୦.୦୦ |
| ୯ । | କଳିଙ୍ଗ ସମ୍ରାଟ—ବିଜୁ ପଟ୍ଟନାୟକ | ଟ ୨୦.୦୦ |
| ୧୦ । | ପ୍ରୀତି ଅସରାଏ—ଗୀତି ଶତକ | ଟ ୪୦.୦୦ |
| ୧୧ । | ଫୁଲ ସବୁ ଫୁଟିଲେ—ଶିଶୁ କବିତା | ଟ ୧୦.୦୦ |
| ୧୨ । | କିଏରେ ତୁହି କିଏ ? —ଶିଶୁ କବିତା | ଟ ୧୦.୦୦ |

ଯୋଗାଯୋଗ :

**ଶ୍ରୀମତୀ ପ୍ରତିଭା ନାୟକ**

ପରିଚାଳକ ଅରୁଣ-ତରୁଣ, ଆକାଶବାଣୀ ମାର୍ଗ

ଜଗଦା, ରାଉରକେଲା-୪୨

ISBN No. 81—901015-0-1, Phone-570704